(ଭକ୍ତ କବି ଦୀନକୃଷ୍ଣ ଦାସଙ୍କ ବରଚିତ ।)

# ଗଜନିସ୍ତାରଣ ।

ଶ୍ରୀମତୀ ସରୋଜିନୀ ଦାସୀଙ୍କ ଦ୍ୱାରା

ଦ୍ୱିତୀୟବାର ପ୍ରକାଶିତ ।



ସତ୍ୟମୋହନ ପୁସ୍ତକାଳୟ
ଶ୍ରୀମୋହନ ଚରଣ ଦାସ
ପୋ: ଚାନ୍ଦନୀଚୌକ
କଟକ

ମୂଲ୍ୟ ଟ ୦ ।୬ ଦୁଇପଇସା ମାତ୍ର ।

# ଗଜନିସ୍ତାରଣ ।

ଦ୍ୱାରକା ପୁରେ ସ୍ୱର୍ଗଧାମ୍ଭ । ସମସ୍ତ ଯାଦବ ବସାଇ ।
ଆପଣେ ଛଚ୍ଛ ଯଦୁପତି । ବସିଲେ ଦେବାର୍ଚ୍ଚନ କତି ।
ଯାଦବ ମଧ୍ୟରେ ଉଦ୍ଧବ । କୃଷ୍ଣଙ୍କ ଅତି ପ୍ରିୟଭାବ ।
ଉଦ୍ଧବ ବୋଇଲେ ଗୋସାଇଁ । ଏମନ୍ତ ପଚ୍ଛୁଛନ୍ତି ମୁହିଁ ।
କୁମ୍ଭୀରେ ପଡିଲା କପଡି । ତୁମ୍ଭେ କି କଲ ଯଦୁପତି ।
ତାହୁଁ ପଡିଲା ଅସି ଚକ୍ର । ମୋ ଆଗେ କହ ପଦ୍ମନେତ୍ର ।
ବୋଲନ୍ତି ଶରଣ ସୋଦର । ଶୁଣ ହେ ଭକତ ଶେଖର ।
ସରଯୂ ନଦୀର ତଟରେ । ଦକ୍ଷିଣ ସମୁଦ୍ର କୂଳରେ ।
ବୈଶାଖ ଏକାଦଶୀ ଦିନ । କୁଅର ମାଡିଲା ଯେ ପୁଣ ।
ମତ୍ସ୍ୟ କଚ୍ଛପ ଯେ ମଗର । ଅବର ଯେତେ ଜଳଚର ।
ଥୋକାଏ କୁଅରେ ଉଠିଲେ । ଦ୍ୱାଦଶ ଯୁଣ ଯାଏ ଗଲେ ।
ଚକମୀ ନାମେଣ କୁମ୍ଭୀର । ସେ ପଛେ ହୋଇଲା ବାହାର ।
ମତ୍ସ୍ୟ କଚ୍ଛପ ଯେ ଅସିଣ । ପଶନ୍ତି ତାହାର ଉଦ୍ରେଣ ।
ଏମନ୍ତେ ଅତି ସ୍ଥୂଳ ହୋଇ । ସୁଖେ ସେ ଅହାର କରଇ ।
ଅଶୀ ଯେ କୋଶ ଯାଏ ଗଲା । ତେଣିକି ଯାଇ ନ ପାରିଲା ।
ତକ୍ଷଣେ ଗ୍ଲଡିଲା କୁଅର । ଶୁଷ୍କରେ ପଡିଲା କୁମ୍ଭୀର ।
ଗୃହ ଚରଣ ତାର ନାହିଁ । ଅରତେ କୁମ୍ଭୀର ପଡ଼ଇ ।
କଣ୍ଠସ୍ଥ ପ୍ରାଣ ଯିବ ତାର । ମରଣେ ପଡିଛି କୁମ୍ଭୀର ।
ଏମନ୍ତ ସମୟରେ ତହିଁ । ଗଜ ଅସଇ ପାଣି ଖାଇ ।
କୁମ୍ଭକ ନାମେ ମତ୍ତହସ୍ତୀ । ସଙ୍ଗେ ତା ବାଳକେ ଅଛନ୍ତି ।
ପୁଣ ଯେ କେଣାଗୋଟି ସଙ୍ଗେ । ସେନା ଅସଇ ଅତି ରଙ୍ଗେ ।
କୁମ୍ଭୀର ପଡିଣ ଯେ ଥିଲା । ଦୂରହୁଁ ଅନାଇଣ ଦେଲା ।
କୁମ୍ଭୀର ବଚୃରଇ ଚିତ୍ତେ । ଆସୁ ଅଛନ୍ତି ଗଜଯୂଥେ ।
ଏଠାରେ ଉପାୟ କରିବ । ମଦ୍ଗଜ ବୋଲିଣ ଡାକିବି ।
ମଦ୍ଗଜ ବୋଲିବି ମୁଁ ଯେବେ । ସେମୋତେତାରକନେବତେବେ

ଏମନ୍ତ ବଚନ୍ତେ କୁମ୍ଭୀର । ଗଜ ହୋଇଲା କାତର ।
ଅସ ମଇଳ ମେ ର ପାଶ । ଛଡ଼ିବ ଏକାନ୍ତ ବିଶ୍ୱାସ ।
କୁମ୍ଭୀର ଜଠେ ଡ଼ାକ ଦେଇ । ମଇଳ ଅସ ବେଗ ହୋଇ ।
ଏମନ୍ତ ଡାକନ୍ତେ ଯହୁଁ । ଗଜ ଯେ ଚାଳିଟିଲା ତହୁଁ ।
ସଙ୍ଗତେ ତାର ପୁତ୍ର ଥିଲେ । କଧାଁଇ ଯାଉଛ ବୋଇଲେ ।
ଗଜ ବୋଲଇ ପୁତ୍ରମଣି । ତୁମ୍ଭର ଜ୍ଞାନ ନାହିଁ ପୁଣି ।
ପୂର୍ବେ ଯେ ଧର୍ମହିଁ ନ କଲ । ସେ ହେତୁ ପଶୁଜନ୍ମ ହେଲ ।
ଅଠଙ୍ଗ କାଳେ ଯେଉଁ ପ୍ରାଣୀ । ତାହାଙ୍କ ଉପଦେଶ ଶୁଣି ।
ସେ ତାକୁ ଛଳେଇ କି ସ୍ୱର୍ଗ । ଅବଶ୍ୟ ଘୋର ନର୍କବାସ ।
ଏକଥା ଶୁଣିଅଛୁ ମୁହିଁ । ଯୁଝତ ନ ପାରଇ ଯାଇ ।
ତାର ନିକଟ ଯାଏ ଯିବ । ଉଚିତ ବାରତା ଶୁଣିବ ।
ଏମନ୍ତ ପୁତ୍ରଙ୍କୁ ମେଲାଣି । ଦେଲା ସେ ଗଜ ନୃପମଣି ॥
କୁମ୍ଭୀର ନିକଟେ ମିଳିଲା । କି ଅର୍ଥେ ଡାକିଲୁ ବୋଇଲା ।
କୁମ୍ଭୀର ବୋଲଇ ଗୋସାଇଁ । ଉଠିତ ନ ପାରଇ ଯାଇଁ ।
ସେ କଥା କହଇ ମୁଁ ତୋତେ । ଏଥୁ ଉଦ୍ଧାର ହେ ସଙ୍ଗାତେ ।
ସାନ ସାନରେ ବଳୁମନ୍ତ । ବଡ ବଡରେ ଯେ ପୀରତ ।
ଏହାତ ପୂର୍ବରୁ ଅଛଇ । ଶୁଣିମା ସାବଧାନ ହୋଇ ।
ଯେମନ୍ତେ ପାରମୋତେ ନିଅ । ଗଭୀର ଜଳରେ ପକାଅ ।
ଗଜ ଶୁଣୁତେ ତାହା କଲା । ପ୍ରାଣର ସ୍ଥଡ ଅଚଇଲା ।
ମଇଳ ପଣ ପଛେ ଥାଇ । ଅଗେ କୁମ୍ଭୀର ପ୍ରାଣପାଇ ।
ଏହା ବଚନ ମତ୍ତହସ୍ତୀ । ଥୋର ଲଗାଇ ତାକୁ ଟେକି ।
ଦନ୍ତର ମଧ୍ୟରେ ବସାଇ । ଚାଲଇ ଧୀର ଧୀର ହୋଇ ।
ବ୍ୟଥା ପାଇବ ମୋ ମଇଳ । ଅପ୍ରାଧ ହୋଇବ ବହୁତ ।
ସ୍ୱଭାବେ ବଡ଼ ଯେ କୁମ୍ଭୀର । ଅତ ଗରିଷ୍ଠ ତା ଶରୀର ।
ତିନିଶ ହାତ ଲମ୍ବ ହୋଇ । ଶଏ ହାତ ବିସ୍ତାର ଦେଖି ।
ଭଙ୍ଗା ପର୍ବତ ପ୍ରାୟ ହୋଇ । ସଧୀରେ ପଥ ବହିଯାଇ ।
ସମୁଦ୍ର ନିକଟେ ମିଳିଲା । ମଇଳ ଯାଅ ହେ ବୋଇଲା ।
ମଇଳ ଭଲ ହୋ ମେଲାଣି । ଏଠାରେ ପହଁସ୍ୱଏ ପାଣି ।

ତହିଁକି କୁମ୍ଭୀର ବୋଲଇ । ଶୁଣ ହେ ସାବଧାନ ହୋଇ ।
ଯେପର୍ଯ୍ୟନ୍ତ ପାରି ମୋତେ ନାଥ । ଗମ୍ଭୀର ଜଳରେ ପକାଅ ॥
ଗଜ ସମ୍ମତ ତାହା କଲା । ଅହୁରି ଖଣ୍ଡେ ଦୂର ନେଲା ।
ପୁଣି ନିଅନ୍ତେ ଉଦ୍ଧାରି । ଗଜ ଶରୀର ଗଲା ବୁଡ଼ି ।
ଗଜ ଶରୀର ବୁଡ଼ିଗଲା । ଦେହ ତା କିଛୁ ନ ଦିଶିଲା ।
ମାପନ୍ତେ ତିନି ଯେ ଅଙ୍ଗୁଳ । ଗଜର ଦଣେ ଥୋରି ଥଳ ।
ଲହଡ଼ି ଅସେ ଯେତେବେଳେ । ଗଜ ବୁଡ଼ଇ ତେତେବେଳେ ।
ଲହଡ଼ି ଉଣା ହୁଏ ଯହିଁ । ଗଜ ନିଶ୍ୱାସ ଛାଡ଼େ ତହିଁ ।
କୁମ୍ଭୀର ଡେଇଁଣ ପଶିଲା । ଗମ୍ଭୀର ଜଳରେ ବୁଡ଼ିଲା ।
ଖଗେ ଧଇଲା ପାଦଚାରି । ଦନ୍ତେଣ ତଣ୍ଟି ତା କାମୋଡ଼ି ।
କାମୋଡ଼ି ଭରେ ଲୁଣ୍ଠଣ । ବୋଲଇ ସେ ନେବ ତୋ ପ୍ରାଣ ।
ଶାଙ୍କୋଳି ଦେଲା ଧ୍ୟାୟୀ କରି । ଗୁରୁ ଚରଣ ଅଣ୍ଟେ ଧରି ।
କୁମ୍ଭୀର ବୋଲଇ ଗୋସାଇଁ । ଧନ୍ୟ ବିଧାତା ଅଟୁ ତୁହି ।
ତିନି ଦିନର ଉପାସକୁ । ଆହାର ଦେଇଛ ଅମ୍ଭଙ୍କୁ ।
ଖାଇବି ଅତି ସୁସ୍ଥ ହୋଇ । ତୋଷ କରିବ ବନ୍ଧୁଭାରି ।
ଏମନ୍ତ ମନରେ ବିଚାରି । ଗଜକୁ ଅଛି ଅଣ୍ଟେ ଧରି ।
ଯାଏଣ ଲଖି ପାଣି ଲାଗି । ଗଜ ହୋଇଲା ଚିନ୍ତାଭାଗୀ ।
ଗଜ ଯେ ମନେ ବିଚାରଇ । ଦେଖ ପାପିଷ୍ଠ ଏହା ଦେଖି ।
ଦେଖି ହେ ଏ ଘୋର ପାତକୀ । ହୋଇଲା ବିଶ୍ୱାସଘାତକୀ ॥
କାଳ ଅନ୍ୟାୟୁ ପୁଣି କଲା । ମୋ ପ୍ରାଣ ନେବାକୁ ଚାହିଁଲା ।
ମୁଁ ଯେବେ ନ ଆଣନ୍ତି ବହି । ସେଠାରେ ଯାଆନ୍ତା ମିଳାଇ ।
କାକ ଶୃଗାଳ ଯେ ଭକ୍ଷନ୍ତେ । ଶରୀରେ କୃମି ତା ପଡ଼ନ୍ତେ ।
ପୁତ୍ରଙ୍କ ପଠାଇ ମୁଁ ନ କଲି । ଏହାକୁ ବହି ମୁଁ ଆଣିଲି ।
କାଳ ଏ ହୋଇଲା ପାପିଷ୍ଠ । ନିକଷ୍ଟ କରିବ ମୋତେ ନଷ୍ଟ ।
ଶରୀରେ ଜ୍ଞାନ ଉପୁଜିଲା । ପୂର୍ବେ ଚରିତ୍ର ସୁମରିଲା ।
ଗଜ ଯେ ବିଚାରଇ ମନେ । ଯେକାଳେ ଥିଲି ସେ ରିବନେ ।
ଶ୍ରୀସିଂହ ଯେ ପର୍ବତରେ । ଥିଲି ମୁଁ ଯେବଣି କାଳରେ ।

ମୂର୍ଖଁ ମାରଇ ବୋଲି କଇ । ଶୁଣ୍ଡ ହୋଇଲେ ତପଗ୍ରସ୍ତ ।
ମୂନ ହୁଅନ୍ତି ଲୁହା ଲୁହ । ଅଠଙ୍ଗ ଭାଳେ ଭବଗ୍ରାହୀ ।
ଅବଶ୍ୟ ରଖନ୍ତି ଗୋସାଇଁ । ଏଥୁ ଅଠଙ୍ଗ ଅନ୍ତ ନାହିଁ ।
ଥରେ ମୁଁ ଭଜିବ ଏଠାଇଁ । ମନରେ ପ୍ରତେ ଯିବ ମୁହିଁ ।
ଏମନ୍ତେ ମନେ ବଗୃହଲା । ଜଗନ୍ନାଥଙ୍କୁ ଚିନ୍ତାକଲା ।
ଥୋଇ ହସ୍ତରେ ଦସଣ୍ଡିଲା । ପଦ୍ମ ଯେ ନାଡ଼େକ ପାଇଲା ।
ତୋଳି ଧଇଲା ପଦ୍ମମୂଳ । ଡାକିଲା ରଖ ଅଦମୂଳ ।
ରଖ ହେ ଦେବକୀ ନନ୍ଦନ । ରଖ ହେ ଶ୍ରୀମଧୁସୂଦନ ।
ରଖ ହେ ଦେବ ଦଇତ୍ୟାରି । କୁମ୍ଭୀର ପାଟିରୁ ନିସ୍ତାରି ।
ତୁମ୍ଭେତ ନ ରଖିବ ଯେବେ । ନିଶ୍ଚୟ ଭକ୍ତ ମଲା ତେବେ ।
ଅନ୍ୟାୟ ହୋଇବ ଗୋସାଇଁ । ଜଳର ଜୀବ ମୁଁ ନୁହଇ ।
ବିଶ୍ୱାସ ଭଇ ମୋତେ ଅଣି । ପ୍ରାଣରେ ମାରୁଅଛୁ ପୁଣି ।
ଦୃଷ୍ଟିରେ ତୋତେ ଦେଖିନାହିଁ ଗୁରୁ ମୋ କର୍ଣ୍ଣେ କହୁ ନାହିଁ
ମୂନିଏ କହନ୍ତି ମୋତେ । ଅଠଙ୍ଗ ଭାଳେ ଜଗନ୍ନାଥେ ।
ଅଟଙ୍ଗ ନାଶନ ତୋ ବାନା । ଭାରେ ହୁଅ ତୁ ବକ୍ରସେହ୍ନା ।
ଶରଣ ରକ୍ଷଣ ମୁରାରି । ଭାରେକ ନେବାକ ଉଦ୍ଧରି ।
ଗୋବନ୍ଦ ଗୋବନ୍ଦ ଗୋସାଇଁ । ତୋ ବିନୁ ଅନ୍ୟ ଅଶେ ନାହିଁ
ଏମନ୍ତେ ବୋଲି କରି ତହୁଁ । ଜନେ ଡାକିଲା ଭବଗ୍ରାହୀ ।
ଦ୍ୱାରକା ଅଣୀସତ୍ର ପୂର୍ଣ୍ଣ । ଲକ୍ଷ୍ମୀର ତୁଲେ ନାରାୟଣ ।
ପଶା ଖେଳରେ ଯଦୁପତି । ଦାନ ପଡ଼ନ୍ତି ପଞ୍ଚ ଅଟ ।
ଲକ୍ଷ୍ମୀ ବାହୁବେ ଯେବେ ସାର । ହାରିବେ ପ୍ରଭୁ ଚକ୍ରଧର ।
ଖେଳର ତାନ ମାନ ଭାଳେ । ଗଜ ଯେ ଡାକିଲା ବିକଳେ ।
ସେ ଡାକ କର୍ଣ୍ଣରେ ଶୁଣିଲେ । ରଖିବୁ ବୋଲିଣ ବୋଇଲେ ।
ତତ୍‌କ୍ଷଣେ ସୁଦର୍ଶନ ଘର । ପେଷିଲେ ବ୍ରହ୍ମାଣ୍ଡ ଗୋସାଇଁ
ହେ ଚକ୍ର ଅତି ବେଗେ ଯିବୁ । କୁମ୍ଭୀର ତଣ୍ଟିରେ ପଡ଼ିବୁ ।
ଛିଡ଼ାଇବ ବେନିଖଣ୍ଡ ହୋଇ । ମୋ ଗଜ ଦେବୁ ମୁକୁଳାଇ ।
ଆଜ୍ଞା ପ୍ରମାଣେ ଚକ୍ର ଗଲା । କୁମ୍ଭୀର ତଣ୍ଟିରେ ପଡ଼ିଲା ।

ଛୁଟିଲା ବେନି ଖଣ୍ଡ ହୋଇ । ଗଜ ଉଦ୍ଧାର ହେଲା ତହିଁ ।
ଚକ୍ର ସମୁଦ୍ରେ ସ୍ନାନ କଲା । ପ୍ରଭୁଙ୍କ ନିକଟେ ମିଳିଲା ।
ଚକ୍ରକୁ ଅନାଇ ଗୋସାଇଁ । ବୋଲନ୍ତି ରଖିଲୁ କି ତୁହି ।
ଲକ୍ଷ୍ମୀ ବୋଲନ୍ତି ମହାବାହୁ । କେତେହେଁ ମିଥ୍ୟା ପ୍ରଭୁ କହୁ ।
ଖେଳେ ହାବଛ ଯଦୁମଣି । ମୋତେତ ଭଣ୍ଡିଲେତ ପୁଣି ।
ମୁଁ ଗୋପସ୍ତ୍ରୀ ସେ ନୁହଇ । ଭଣ୍ଡିବ ମୁରଲୀ ବଜାଇ ।
ଗୋପ ନଗରେ ଜାତ ହୋଇ । ଭଣ୍ଡିବ ନାନା ଶ୍ରେଷ୍ଠ କହି ।
ଶ୍ରେଷ୍ଠିଅ ନାମ ଯେ ତୁମ୍ଭର । ଶ୍ରେଷ୍ଠେ ଭଣ୍ଡୁଛ ନରହରି ।
ରାଜା ଯୁଧିଷ୍ଠି ମହୀପାଳେ । ରାଜସୂ ଯାଗ କଲାବେଳେ ।
ହସ୍ତରେ ଯୋଡ଼ା ବେତ ଧରି । ନାମ ଅନନ୍ତ ପଡ଼ିହାରୀ ।
ଗୋପ ନଗରେ ଜାତ ହରି । ବନେ ମୁରଲୀ ନାଦ କରି ।
ତେମନ୍ତ ପ୍ରାପ୍ତ ମୋତେ କରି । ମିଛେ ଭଣ୍ଡୁଛ ନରହରି ।
ବୋଲନ୍ତି ପ୍ରଭୁ ଦଇତ୍ୟାରି । ଶୁଣ ଗୋ ସିନ୍ଧୁର କୁମାରୀ ।
ଅଶୀ ଯେ ସହସ୍ର ଯୂଣର । ଗଜକୁ ଧଇଲା କୁମ୍ଭୀର ।
ସେ ମୋତେ ଅତକେ ଡାକିଲା । ରଖ ହେ ଶ୍ରୀକୃଷ୍ଣ ବୋଇଲା ।
ରଖିଲୁ ସୁଦର୍ଶନ ଚକ୍ର । ଗଜକୁ ଦେଲୁ ମୁକୁଳାଇ ।
ଲକ୍ଷ୍ମୀ ବୋଲନ୍ତି ଶ୍ରୀବତ୍ସାଙ୍କ । ମୋତେ ତା ଦେଖାଇବ ନେଇ
ଯେବେ ଦେଖିବ ମୋ ନୟନ । ପ୍ରତେ କରିବି ଭଗବାନ ।
ଗଜମୋକ୍ଷଣ ଲୀଳା ଯେବେ । ମୋତେ ତା ଦେଖାଇବ ତେବେ
କେତେ ଦୂରର ଏ ବାରତା । କେମନ୍ତେ ଜାଣିଲ ସେ କଥା ।
କି କଣ୍ଠ ହୋଇଲା ତୁମ୍ଭର । ମୋତେ ଲାଗିଲା ଅଗୋଚର ।
ତକ୍ଷଣେ ଶ୍ରୀ ମଧୁସୂଦନ । ସ୍ୱଇଲେ ବିନତା ନନ୍ଦନ ।
ବିନତାସୁତ ବିକ୍ରମୀଳ । ରମ୍ୟକ ଦ୍ୱୀପରୁ ଅଇଲା ।
ହରିଙ୍କି ଦରଶନ କଲା । ଆନନ୍ଦେ ଚରଣେ ପଡ଼ିଲା ।
ହରି ପଲଙ୍କ ଯେ ଛାଡ଼ିଲା । ଗରୁଡ଼ ପିଠି ବସ୍ତାଇଲା ।
ଲକ୍ଷ୍ମୀଙ୍କି ଘେନି ଶ୍ରୀବତ୍ସାଙ୍କ । ଗରୁଡ଼ ପିଠିରେଣ ଯାଇଁ ।
ବିନତା-ସୁତ ବିକ୍ରମୀଳ । ସମୁଦ୍ର ତଟରେ ମିଳିଲା ।

ଦେଖିଲେ ସମୁଦ୍ରର ଜଳ । ଚକ୍ଷୁର ବୋହୁଛି ହିଲ୍ଲୋଳ ।
କୁମ୍ଭୀର ବେନିଖଣ୍ଡ ହୋଇ । ପଡ଼ିଛି ଗିରି ପ୍ରାୟେ ତହିଁ ।
ଅଙ୍ଗୁଳି ଅଗ୍ରରେ ଦେଖାଇ । ବୋଲନ୍ତି ପ୍ରଭୁ ଲକ୍ଷ୍ମୀପାଇଁ ।
ଲକ୍ଷ୍ମୀ ତା ନୟନେ ଦେଖିଲେ । ଲଜ୍ଜାରେ ବଦନ ପୋତିଲେ ।
ହେଟବଦନ ହୋଇ ମାଏ । କୃଷ୍ଣଙ୍କ ମୁଖକୁ ନ ଚାହେଁ ।
ଲଜ୍ଜା ପାଇଲେ ସିନ୍ଧୁ-ଝିଅ । ହସି ବୋଲନ୍ତି ନନ୍ଦପୁଅ ।
ନ ଜାଣି ତୁମ୍ଭେ ପ୍ରାଣ ସଖି । ମିଥ୍ୟା ବୋଇଲ ଯେ ନ ଦେଖି
ଅତଙ୍କ ନାଶନ ମୋ ବାନା । ଅରତ ଜନେ ବନ୍ଧୁ ସେହ୍ନା ।
ଯେ ମୋତେ ଅତଙ୍କେ ଡାକଇ । ମୁଁ ତାର ପାଶେ ଶୁଣୁଥାଇ ।
ଲକ୍ଷ୍ମୀ ବୋଲନ୍ତି ଦେବ ହରି । ମୁହିଁ ତୁମ୍ଭର ପରବଶ୍ୟ ।
ସ୍ୱଭାବେ ସ୍ତ୍ରୀସ ଜନ୍ମ ହୋଇ । ଧର୍ମ ଅଧର୍ମ ନ ଜାଣଇ ।
ଶୁଣ ଗୋ ସାଗର-ଦୁହିଣି । ମିଥ୍ୟା ଯେ କରୁଥିଲ ପ୍ରଣି ।
ସେଠାରୁ ବିଜେ କରି ଗଲେ । ଗଜକୁ ବାଟରେ ଦେଖିଲେ ।
ଗଜ ଅନେକ କଲା ସ୍ତୁତି । ମେଲାଣି ହେଲେ ଦାଶରଥି ।
ତତକ୍ଷଣେ ବାହୁଡ଼ା ବିଜୟେ । ଦ୍ୱାରକା ପୁରେ ଦେବରାୟେ ।
ଗରୁଡ଼ ପିଠିରୁ ଓହରି । ଶୀତଳ ମଣୋହିକି ସାର ।
ଶୀତଳ ମଣୋହି ସାରିଲେ । କର୍ପୂର ତାମ୍ବୁଳ ଭୁଞ୍ଜିଲେ ।
ଲକ୍ଷ୍ମୀ ସହିତେ ଭବସ୍ୱାମୀ । ସୁଖେଣ ପହୁଡ଼ିଲେ ଯାଇ ।
ସୁଜନ ଜନମାନେ ଶୁଣ । ପାଇବ ବୈକୁଣ୍ଠ କାରଣ ॥
ଏହା ଯେ ପଢ଼ନ୍ତି ଶୁଣନ୍ତି । କୋଟି ପୁରୁଷ ଉଦ୍ଧରନ୍ତି ।
ଗୋ ହତ୍ୟା ବ୍ରହ୍ମହତ୍ୟା ମାନ । ବୃଷଳୀ ଅଧ ସୁରାପା ।
ଏ ଦୋଷ ସର୍ବ କ୍ଷୟ ଯାଇ । ଯେ ତୁଣ୍ଡେ ସମ ନାମ ଗାଇ ।
ଯେ ନର ଅପୁତ୍ରିକ ହୋଇ । ବିଶ୍ୱାସ କଲେ ପୁଅ ପାଇ ।
ଅଶାନୁରୂପ ଯେ ପ୍ରାପତ । ସୁଜନଜନଙ୍କର ହିତ ।
କହଇ ବଡ଼ ଜଗନ୍ନାଥ । ଅଷ୍ଟମସ୍କନ୍ଧେ ଭାଗବତ ।

ଇତି ଶ୍ରୀ ଗଜନିସ୍ତାରଣ ସମାପ୍ତ ।

କଟକମନମୋହନପ୍ରେସରେ ଶ୍ରୀମୋହନଚରଣଦାସଙ୍କଦ୍ୱାରାମୁଦ୍ରିତ

